୰ ଗୋପୀନାଥ ଦାସଙ୍କ କୃତ

# ବାରଓଷା କଥା

ବା

# ବାରମାସୀ ଗୀତ

( ନୂତନ ମୁଦ୍ରଣ )

ପ୍ରକାଶକ—ଧର୍ମ ଗ୍ରନ୍ଥ ଷ୍ଟୋର




ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ ନଂ-୬୦୩୨୯୬

ମୂଲ୍ୟ—ତିନିଟଙ୍କା ମାତ୍ର

# ବାଟଓଷା କଥା

ଜୟ ତୁ ଜୟ ଜନାର୍ଦ୍ଦନ । ଜୟ ତୁ କମଳା ରମଣ ॥
ରାଧାରମଣ ବାସୁଦେବ । ଖଣ୍ଡିଲ ବାସୁଦେବ ବନ୍ଧ ॥
ଗୁପତେ ବଢ଼ ଗୋପପୁରେ । ଜନମି କଂସ ବନ୍ଦୀଘରେ ॥
ଅଶେଷ ମହିମା ତୋହର । କେ କହିପାରେ ତା ଗୋଚର ॥
ନାହିଁ ତୋହର ଆଦିଅନ୍ତ । ତେଣୁ ତୁ ବୋଲାଉ ଅନନ୍ତ ॥
ସକଳ ସୃଷ୍ଟି ହର୍ତ୍ତାକର୍ତ୍ତା । ସକଳ ଜନ ସୁଖଦାତା ॥
ସକଳ ତୋହର ଭିଆଣ । ତୋ ବିନୁ କିଛି ନାହିଁ ଆନ ॥
ତେତିଶ କୋଟି ଦେବଗଣ । ତୋଠାରୁ ହୋଇଲେ ଜନମ ॥
ଆଜ୍ଞା ପାଇଣ ଯେ ଯାହାରେ । ସୃଷ୍ଟିର ଅଧିକାରୀ ହେଲେ ॥
ଯମ ରାଜା ଯେ ସୂର୍ଯ୍ୟ ସୁତ । ସମସ୍ତେ ତାହାର ଆୟତ୍ତ ॥
ମରଣକାଳେ ଧରିନେଇ । ନିଷ୍ଠୁର ପ୍ରହାର କରଇ ॥
ତତଲ ତେଲ ଚଷ୍ଟୁ କଣ୍ଠେ । ଢାଳଇ ଅତି କ୍ରୋଧମନେ ॥
ଅସତୀ ଦୋଷରୁଣୀ ଯେତେ । ଶିମିଳି ଗଛରେ ଟଙ୍ଗଇ ॥
ବିଛା କଙ୍କଡ଼ା ନାଗମାନେ । କାମୁଡ଼ୁ ଥାନ୍ତି ଅନୁକ୍ଷଣେ ॥
ଅଶେଷ ଯନ୍ତ୍ରଣା ସହଇ । ଏ କଷ୍ଟୁ ଆଉ କଷ୍ଟ ନାହିଁ ॥
ଏମନ୍ତ ଦେଖି ନାରାୟଣ । ବିଚାର କଲେ ମନେ ମନେ ॥
ଯେ ବ୍ରତେ ଯମର ସନ୍ତୋଷ । ସେ ବ୍ରତ କରିବି ପ୍ରକାଶ ॥
ଯମ ସନ୍ତୋଷେ ସବୁ ଭଲ । ନୋହିଲେ ଜଳନ୍ତା ଅନଳ ॥
ଯାବତ ଓଷା ବାରବ୍ରତ । ସକଳ ଯାହାଙ୍କର କୃତ ॥
ସେ କଲେ ଏ ପୂଜା ଭିଆଣ । ବାଟଓଷାଟି ଯାର ନାମ ॥

ବ୍ରତକୁ ରଚ ବନମାଳୀ । ପ୍ରକାଶ ପାଇଁ ମନେ ଭାଳି ॥
ତାହାର ମହିମା ଅନନ୍ତ । ତାକୁ କି ଏହା ବଳବନ୍ତ ॥
ଏମନ୍ତ ଗଳ୍ପ କହୁଛ ଧନ । ଦେଖ ବିଧାତା ବିଧିମାନ ॥
ପାଟଳପୁରରେ ବ୍ରାହ୍ମଣ । ଥିଲି ଯେ ଏକଇ ନିର୍ଦ୍ଧନ ॥
ଜନ୍ମିଲେ ତାର ସାତସୁତ । ସମସ୍ତେ ହୋଇଲେ ନିହତ ॥
ବ୍ରାହ୍ମଣ ମନସ୍ତାପ ପାଇ । ବିଷ୍ଣୁଙ୍କୁ ସେବା କଲା ଯାଇ ॥
ତାର ସେବାରେ ହୋଇ ବଶ । ବିଷ୍ଣୁ ମିଳିଲେ ତାର ପାଶ ॥
ସ୍ୱପ୍ନେ କହନ୍ତି ଦାମୋଦର । ବ୍ରାହ୍ମଣ ଚିନ୍ତା ଦୂର କର ॥
କହ ତୋ ପତ୍ନୀକି ତ୍ୱରିତ । ଆଚରୁ ବାଟଓଷା ବ୍ରତ ॥
ଏଥି ସନ୍ତୋଷ ଯନ୍ତୁ ନାହା । କରିବେ ତୋହଠାରେ ଦୟା ॥
ମାଘମ ସର କୃଷ୍ଣପକ୍ଷ । ଅଟଇ ଏହି ଓଷା ମୋକ୍ଷ ॥
ପଣ୍ଡ୍ରୁ ପୂର୍ଣ୍ଣିମା ହେବ ଗତ । ଭୃଗୁସ୍ତ ନବମ ସପତ ॥
ଏ ତିନି ଦିନଟି ପ୍ରଧାନ । ଓଷା କରିବାର ବିଧାନ ॥
ନାରୀମାନଙ୍କର ଏ ମତ । ଅତି କଷ୍ଟରେ ଏହି ବ୍ରତ ॥
ଯେବଣ ପାତ୍ରରେ କରିବ । ଧାନକୁ ତହିଁରେ ମାପିବ ॥
ସେହି ଦିନରେ ଚୂନା କୁଟି । ସାରିବ ସବୁ ବିଟାବିଟି ॥
ଘୃତରେ ନଇବେଦ୍ୟ ପାକ । କରିବ ନିଷ୍ଠାପରେ ପାକ ॥
କୁଷ କୁଣ୍ଡାଙ୍କୁ ଜଳେ ନେଇ । ଦେଇଣ ଆସିବ ଛୁଟେଇ ॥
ଯେତେକ ଦ୍ରବ୍ୟ କରିଥିବ । ସକଳ ପୂଜିବାକୁ ନେବ ॥
କେତେ ନ ରଖିବଟି ଶେଷ । ରଖିଲେ ଯମ ଅସନ୍ତୋଷ ॥
ଆମ୍ବ କଦଳୀ ମୂଳା ପୁଣ । ଖଙ୍କୁଡ଼ି ମଧ୍ୟରେ ଥୋଇଣ ॥
ଛଳକୁ ନଇବେଦ୍ୟ ଥୋଇ । ବଟରମୂଳରେ ଯୋଡ଼ାଇ ।
ଚନ୍ଦନ ସିନ୍ଦୂର କଜ୍ଜ୍ୱଳ । ଝୁଣା ଗୁଗୁଳ ଫୁଲ ମାଳ ॥
ହସ୍ତରେ ଘେନ ପାପାବଳୀ । ଚଳିବ ଦେଇ ହୁଳହୁଳି ॥
ଉତ୍ତମ ବାସ ପିନ୍ଧିକରି । ପୂଜା ସାମଗ୍ରୀମାନ ଧରି ॥

ଯମରାଜାଙ୍କୁ ମନେ ଚିନ୍ତ । ଚଳିବ ହୋଇ ହୃଷ୍ଟମତ ।
ବନସ୍ତ ମଧ୍ୟରେ ପଶିବ । ଯତ୍ର ସୁରମ୍ୟ ସ୍ଥାନ ହେବ ।
ଆଗହୁଁ ସ୍ଥାନ ଲିପି ପୋଛି । ଗର୍ତ୍ତ ଖୋଳିଣ ଥିବ ବାଛି ।
ଫୁଲ ଚନ୍ଦନରେ ମଣ୍ଡିତ । କଜ୍ଜ୍ୱଳ ସିନ୍ଦୁର ସହିତ ।
ଗର୍ତ୍ତର ଚଉପାଶେ ନାରୀ । ବସିବେ ସମସ୍ତ ଆବୋରି ।
ଏମନ୍ତ ଯେତେକ ବିଧାନ । କହିଲେ ସବୁ ନାରାୟଣ ।
ସକଳ କଥା ଗଲେ କହି । ବ୍ରାହ୍ମଣ ଉଠିଲା ଚିଆଇଁ ।
ଘରଣୀ ଆଗରେ କହିଲା । ଶୁଣି ସେ ଆନନ୍ଦ ହୋଇଲା ।
ପଞ୍ଚୁ ପୂର୍ଣ୍ଣିମା ଦିନଦନେ । ବ୍ରାହ୍ମଣୀ ହରଷିତ ମନେ ॥
ସୂତା ଯା କାଟି ରଖିଥିଲା । ପତି ସମୀପେ ନେଇ ଦେଲା ॥
ଗାମୁଛା କାନିରେ ବାନ୍ଧିଣ । ହାଟକୁ ଚଳିଲା ବ୍ରାହ୍ମଣ ॥
କଉଡ଼ି ଦରପଣ ଦେଲା । ଓଷା ସାମଗ୍ରୀ କ୍ରୟ କଲା ॥
ଓଷା ସାମଗ୍ରୀ ସଜ କରି । ଗୃହକୁ ଆସିଲା ସେ ଫେରି ।
ବ୍ରାହ୍ମଣୀ ବାଟ ଚାହିଁଥିଲା । ଆନନ୍ଦେ ଫେଟାଇ ରଖିଲା ।
ନଦୀକୁ ଯାଇ ସ୍ନାନ ସାରି । ନିର୍ଜନେ ବସିଲା ସୁନ୍ଦରୀ ।
ନାନା ପ୍ରକାର ପିଠା କଲା । ଗନ୍ଧ ଚନ୍ଦନ ସଜାଡ଼ିଲା ।
ଏମନ୍ତ କରୁ କରୁ ନାରୀ । ପ୍ରବେଶ ହୋଇଲା ତିମିର ॥
ଓଷା ସାମଗ୍ରୀ ସଜ କରି । ଚୁଙ୍ଗୁଡ଼ା ଗୋଟିକରେ ଭରି ॥
ଅବଲା କରି ମାଙ୍କସାଥ । ବନସ୍ତେ ମିଳିଲା ତୁରିତ ।
ଯଥା ବିଧାନେ ଓଷା ସାରି । ବରଜମୂଳରେ ପହଁରି ।
ପୁତ୍ର ମନାସି ବ୍ରତ କଲା । ଯମର ସୁଦୟା ହୋଇଲା ।
ଆନନ୍ଦେ ଗୃହକୁ ଅଇଲା । ଓଷା ପ୍ରସାଦ ସର୍ବେ ଦେଲା ॥
ଏମନ୍ତେ କେତେଦିନ ଗଲା । ବ୍ରାହ୍ମଣୀ ସୁତ ପ୍ରସବିଲା ॥
ଗୋଟିକ ପରେ ଗୋଟି ଗୋଟି । ଏମନ୍ତେ ହେଲେ ସାତଗୋଟି ।
ସର୍ବେ ହୋଇଲେ ବିଦ୍ୟମାନ । ମହାସୁଖରେ ନେଲେ ଦିନ ।

ଏଥିଅନ୍ତରୁ ଗ୍ରାମ ବାଳୀ । ସମସ୍ତେ ଓଷା କଲେ ମିଳି ॥
ଏ ଅନନ୍ତ ପଦ୍ମମା ଯମର । ପ୍ରକାଶ ହେଲା ଯେ ପ୍ରକାର ॥
ସମସ୍ତେ ଶାନ୍ତ କଲେ ଚିତ୍ତ । ଶୁଣ ଏ ଓଷାର ବୃତ୍ତାନ୍ତ ॥
କୋଶଳ ଦେଶର ରାଜନ । ନାମ ଅଟଇ ସୁଦର୍ଶନ ॥
ଅତି ଦୟାଳୁ ରାଜା ସେହୁ । ପରଜା ଗୁହାରି ଶୁଣଇ ॥
ସମସ୍ତେ ମିତ୍ର ଶତ୍ରୁ ନାହିଁ । ଅତି ସୁଖରେ ଦିନ ଯାଇ ॥
ପତ୍ନୀର ନାମ ଲୀଳାବତୀ । ସର୍ବ ବିଷୟେ ସୁଖମତି ॥
ଏକା ଅପୁତ୍ର ହେଲୁ ରାଜା । ସର୍ବଦା କରେ ଦେବ ପୂଜା ॥
ଦୁଃଖରେ ଥାନ୍ତି ବେନି ପ୍ରାଣୀ । ଚାତକ ଯଥା ମେଘପାଣି ॥
ଏକ ଦିନରେ ସଭା କରି । ବ୍ରାହ୍ମଣ ଜଉତିଷ ବରି ॥
ପୁତ୍ର ହୋଇବ କି ପ୍ରକାରେ । ସମସ୍ତେ ଅଛନ୍ତି ଚିନ୍ତାରେ ॥
ରଜନୀ ଅଛି ଅର୍ଦ୍ଧ ହୋଇ । ବାଟ ଅବାଟ ନ ଦିଶଇ ॥
ଦଇବେ ବାଟଓଷା ଆସି । ହୋଇଛି ସେହିଦିନ ନିଶି ॥
ବନସ୍ତେ ନାଗମାନେ ମିଳି । ଦେଇ ଅଛନ୍ତି ହୁଳହୁଳି ॥
ପୋଇଲ ପଣବାଣମାନେ । ବୋଲନ୍ତି ମଧୁର ବଚନେ ॥
ଦାସୀଏ ପଚାରନ୍ତି ଭାଷ । ଏ ଓଷା ନାମ ଅଟେ କିସ ॥
ସର୍ବେ କହନ୍ତି ଠୁଳ ହୋଇ । ଯମରାଜାଙ୍କ ଓଷା ଏହି ॥
ଏହାକୁ ଯେ ଜନ କରଇ । ଅପୁତ୍ରି ଦୋଷ କ୍ଷୟ ଯାଇ ॥
ଏଥି ସନ୍ତୋଷ ଜନୁପତି । ଆନନ୍ଦେ ପୁତ୍ର ବର ଦିଅନ୍ତି ॥
ଶୁଣି ଏମନ୍ତ ଦାସୀମାନେ । ବୋଲନ୍ତି ମଧୁର ବଚନେ ॥
ଆମ୍ଭର ରାଜା ଅପୁତ୍ରିକ । ତେଣୁ ତାଙ୍କର ମନ ଦୁଃଖ ॥
ନାଗଏ ଅନୁଗ୍ରହ କର । ରାଜାଙ୍କୁ ଦିଅ ପୁତ୍ର ବର ॥
ଶୁଣି ଏମନ୍ତ ନାଗଗଣ । ପ୍ରସାଦ ଦେଲେ ତତକ୍ଷଣ ॥
ବୋଇଲେ ଏହା ଘେନିଯିବ । ରାଣୀଙ୍କ ହସ୍ତେ ସମର୍ପିବ ॥
ମନରେ ଓଷା ମନାସିବେ । ଆନନ୍ଦେ ପ୍ରସାଦ ପାଇବେ ॥

ହୋଇଲେ ତାଂକର ତନୟ । ଏ ଓଷା କରିବେ ନିଶ୍ଚୟ ॥
ଏମନ୍ତ ଶୁଣି ଦାସୀଗଣ । ଆନନ୍ଦେ କରିଲେ ଗମନ ॥
ରାଜାଙ୍କୁ ସତ୍ୱରେ ଜଣାଇ । ରାଣୀଂକ ପାଖେ ଦେଲେ ନେଇ ॥
ଶୁଣି ଏମନ୍ତ ଲୀଳାବତୀ । ଦରିଦ୍ର ପାଇଲା ସମ୍ପତ୍ତି ॥
ମୃତକ ଦେଖିଲା କି ଜୀବନ । ଅନ୍ଧ ପାଇଲା ଚକ୍ଷୁଦାନ ॥
ସଂକଳ୍ପ ଦୃଢ଼ଚିତ୍ତେ । ଓଷା କରିବି ପୁତ୍ର ହେଲେ ॥
ପ୍ରସାଦ ପାଇ ହୃଷ୍ଟ ଚିତ୍ତେ । ଏମନ୍ତ ଗଲା ଦିନ କେତେ ॥
ରାଣୀଂକ ଗର୍ଭ ସଞ୍ଚରିଲା । ଚନ୍ଦ୍ରମା ପ୍ରାୟେକ ବଢ଼ିଲା ॥
ଶରୀର ହୋଇଲା ବିବର୍ଣ୍ଣ । ହାଇ ଉଠଇ ଘନ ଘନ ॥
ପୃଥୁଳ ହେଲା ସିଂହ କଟୀ । ଖସିଲା ଖୋସା ପିନ୍ଧା ଶାଟୀ ॥
ଭାରି ହୋଇଲା ଅଳଂକାର । ଆହାରେ ଜନ୍ମିଲା ବିକାର ॥
ସୁମାନ୍ତ ଶେଯ ତ୍ୟାଗ କରି । ଶୋଇଲେ ଧରଣୀ ଉପରି ॥
ଏମନ୍ତେ ଯେତେକ ଲକ୍ଷଣ । ସକଳ ହୋଇଲା ପୂରଣ ॥
କ୍ରମେ ଦଶମାସ ହୋଇଲା । ରାଣୀ ଯେ ପୁତ୍ର ପ୍ରସବିଲା ॥
ରାଜା ଆନନ୍ଦ କଥା ଶୁଣି । ନନ୍ଦର ଘରେ ବେଣୁ ପାଣି ॥
ହୋଇଲା ହାଟ ଭୂଠ ଜର । ମଣ୍ଡନ ହୋଇଲା ନଗର ॥
ସୁବର୍ଣ୍ଣ କୁମ୍ଭ ବସେ ଦ୍ୱାରେ । ଶ୍ୱେତ ପତାକା ଶିଖରରେ ॥
ଭାଟମାନଂକ ସ୍ତୁତିଗାନ । ବ୍ରାହ୍ମଣମାନଂକ କଲ୍ୟାଣ ॥
ଧ୍ୱନରେ କମ୍ପିଲା ସେ ଦେଶ । ସକଳ ଜନଂକ ଉଲ୍ଲାସ ॥
ହୋଇଲା ବସ୍ତ୍ର ବିତରଣ । ସୁବର୍ଣ୍ଣ ରୌପ୍ୟ ଆଦି ଧନ ॥
ଯେତେ ସେ ଧନ ଦେଲେ ଆଣି । କେ ତାହା କହିବ ବଖାଣି ॥
ପଞ୍ଚମ ଦିନେ ପଞ୍ଚୁଆତି । ଷଷ୍ଠ ଦିନରେ କଲେ ଷଷ୍ଠୀ ॥
ସପ୍ତମ ଦିନେ ଉଠିଆରି । ବିଧି ବିଧାନ ମତେ କରି ॥
ଏକବିଂଶତି ଦିନେ ପୁଣ । ଭାଇ ବନ୍ଧୁଙ୍କୁ ନିମନ୍ତ୍ରଣ ॥
ସମସ୍ତ କରିବେ ଭୋଜନ । ଆହାରେ ତୃପ୍ତ ସର୍ବଜନ ॥

ସରିଲା ସକଳ ଉତ୍ସବ । ଘରକୁ ଚଳିଲେ ସେ ସର୍ବ ॥
ଏମନ୍ତେ ଗଲା ଏକୋଇଶା । ମନରେ ନାହିଁ ଆଉ ଉଷା ॥
ପୁତ୍ରର ନାମ ବୀରସେନ । ଦେଖି ଆନନ୍ଦ ବେନିଜନ ॥
ଏମନ୍ତେ ପୂରିଲା ବରଷ । ଧରେଟି କଥା ଶୁଣି ତୋଷ ॥
ସ୍ୱଭାବେ ରାଜା ରାଣୀ ମନ । ସର୍ବଦା ସୁଖରେ ମଗନ ॥
ଉଷାର କଥା ନାହିଁ ମନେ । ପାଞ୍ଚ ବରଷ ହେଲା କ୍ରମେ ॥
ଖଡ଼ି ଛୁଇଁଣ ବୀରସେନ । ଆରମ୍ଭ କରିଲା ପଠନ ॥
ପାଠଶାଳାକୁ ଯାଏ ନିତ । ପାଠ ପଠନେ ସଦା ମତ୍ତ ॥
ଅତ୍ୟନ୍ତ ସୁଶୀଳ ସେ ପୁଅ । ନ କରେ କା ସଙ୍ଗେ କଳହ ॥
ସାତ ବରଷ ଏହିମତ । ତେଣେ ଶୁଣନ୍ତୁ ଜନୁପତ ॥
ଯୋ ଉଷା ମନରେ ନକଲା । ସୁଖରେ ରାଜା ଭୋଗ ହେଲା ॥
ଯ ହା ସକାଶେ ଏତେ କଥା । ସେ ଗଳଲ ହେବ ଧାରଚେତା ॥
ଏମନ୍ତ ଯମରାଜା ଭାଳି । ଅତି କୋପରେ ଗଲେ ଚଳି ॥
ପାଠ ପଢ଼ିଣ ବୀରସେନ । ଘରକୁ କରଇ ଗମନ ॥
ଦେଖିଲେ ପାଶେ କେହି ନାହିଁ । ଏକାକୀ ବାଳକ ଗମଇ ॥
ବାନ୍ଧଣ ଚର୍ମ ଦଉଡ଼ିରେ । ଘରକୁ ନେଇଗଲେ ଖରେ ॥
ମାଆକୁ କହିଲେ ଏସନ । ଆଣିଛୁ ଅପୂର୍ବ ଭୋଜନ ॥
ଏହାକୁ କର ତୁ ରନ୍ଧନ । ଖାଇଲେ ତୋଷ ହେବ ମନ ॥
ମାଆ ବୋଲଇ ଯମମଣି । କ କର୍ମ କଲୁ କାହୁଁ ଆଣି ॥
କାହାର ଏକୋଇର ବଳା । କେମନ୍ତେ ତୋ ସତ ବଳିଲା ॥
ଯମଙ୍କ ଘରେ ଏହିକାଳେ । ଅତିଥି ଏକ ପ୍ରବେଶିଲେ ॥
ତା ଦେଖି ବାଳକକୁ ନେଇ । ଗମ୍ଭୀର ଭିତରେ ଲୁଚଇ ॥
ମାତାଙ୍କୁ ବୋଲେ ଯମରାଜ । ସତ୍ୱର କର ରନ୍ଧା କାର୍ଯ୍ୟ ॥
କଦଳୀ ବାଡ଼ରେ ପ୍ରଚୁର । ଆଣି ତଉଣ ବେଗେ କର ॥
ଶୁଣିଣ ମାତା ବେଗେ ଚଳି । ବାଡ଼ିରେ ଖୋଜନ୍ତି କଦଳୀ ॥

ଦଶଫେଣିଆ କାଢ ଗୁଡ଼ । ଆଣିଲେ ଦ ଫେଣିଆ ଲେଡ଼ ॥
ତତକ୍ଷଣ ଯମ ହେ ହସିଲେ । ମାତାଙ୍କୁ ଡାକଣ ବୋଇଲେ ।
କେତେ କଦଳୀ ଅବା ନାହିଁ । ଏହାକୁ ଆଣିଲ କମ୍ପାଇଁ ॥
ଜନନୀ ବୋଇଲେ ରେ ସୁତ । ବଡ଼କୁ ନଗଲ ମୋ ହାତ ॥
ସତଟି ନ ବଳଲ ଯହୁଁ । ଆଣିଲ ଏହାକୁ ମୁଁ ତହୁଁ ॥
ପୁତ୍ର ବୋଲଇ ମାତା ମୋର । ଅଟଇ କେମନ୍ତ ବେଭାର ॥
ବହୁତ ପୁଅ ଝିଅ ଯହିଁ । ତହିଁକ ସତ ନ ବଳଇ ॥
ଅଳପଠାରୁ ଆଣେ ମୁହିଁ । ତେଣୁ ମୋହର ଦୋଷ ନାହିଁ ॥
ସ୍ନାନ କରିବା ପାଇଁ ଯମ । ଗମିଲେ ଏମନ୍ତ କହିଣ ॥
ଯମର ମାଆ ଦୟା ପାଇ । ଖାରସେନକୁ ଯେ କହଇ ॥
ତାହାର ପୁତ୍ର ଅଟୁ ବତ୍ସ । ତୋ'ତେ ଖାଇବ ବୋଲି ଇଚ୍ଛା ॥
ଉପାୟ କହୁଛି ମୁଁ କର । ଏଥିରୁ ହୋଇବୁ ଉଦ୍ଧାର ॥
କାଠି ଦଖଣ୍ଡ ଦେଇଥିଅ । ପୂଜା କରିବା ବେଳେ ପୁଅ ॥
ପୁରାଇ ଛୁଙ୍କିବୁ ନାକର । ବୋଲିବ ହୁଅ ଅଛମର ॥
ତା ଶୁଣି ପୁତ୍ର ନ ଖାଇବ । ତୋତେ ନେଇଣ ଛାଡ଼ିଦେବ ॥
ଯେ ଦିନ ଯମରାଜା ଦେଲ । ପୁଅକୁ କରିଛି ବନ୍ଧନ ॥
ରାଜା ରାଣୀଙ୍କ ମନଦୁଃଖ । କାହାରି ମନେ ନାହିଁ ସୁଖ ॥
ଛୁଟନ୍ତି ଯାକ ଉପବାସ । ଖୋଜନ୍ତି ବନଗିରି ଦେଶ ॥
ନାଗରା ଦେଇ ଗ୍ରାମ ଗ୍ରାମ । କରନ୍ତି ଲୋକେ ଅନ୍ୱେଷଣ ॥
ପୁଅ ତ ଅଛୁ ବନ୍ଦୀଶାଳେ । କାହୁଁ ପାଇବେ ଯେତେକଲେ ।
ଏ ଅନ୍ତେ ଉଷାଇତମାନେ । ଏକ ମନରେ ଶୁଣ କର୍ଣ୍ଣେ ॥
ମଉନ ହବେ ଶୁଣୁଥିବ । ହୁଳହୁଳି ଯେ ଦେଉଥିବ ॥
ସ୍ନାନରୁ ଯମରାଜା ଆସି । ପୂଜା କରିବା ପାଇଁ ବସି ॥
ଏମନ୍ତ ବେଳେ ଖାରସେନ । ଛୁଙ୍କିଲା କାଠି ପୁରାଇଣ ।
ରେଖାଇ ଘରେ ଯମ ମାତା । ବୋଲେ ଅଛମର ହୋଇଥା ॥

ଯମ ବୋଲଇ ହୋଇ ବ୍ୟସ୍ତ । ନ କଲ ନ କଲ ଘେ ମାତ ॥
ଅଛମନ୍ତ ଦୁଃଖ ଦେବାଇଲ । ତାହାକୁ ଏମନ୍ତ କହିଲ ॥
ଯାହାକୁ ଖାଇବାର ପାଇଁ । ସାଇତ ଥୋଇଥିଲ ମୁହିଁ ॥
ତାହାକୁ କଲ ଆଛମନ୍ତ । ଆଜ କ ହୋଇବ ଆହାର ॥
ମାତା ବୋଲଇ ତାହା ଶୁଣି । ତେତେ କହିଲ ପୁତ୍ରମଣି ॥
କହନ୍ତୁ କାହାକୁ ବା ଆଜ । ତୋ ପରି ପୁତ୍ର ଥାଉ ଆଜ ॥
ଏମନ୍ତେ ଭୋଜନ ସାରଣ । ମନରେ ପାଞ୍ଚିଲେ ଯେ ଯମ ॥
ଖାରସେନକୁ ନ ମାରିବ । ନେଇଣ ଛାଡ଼ି ମୁଁ ଆସିବ ॥
ଚେତାଇଦେବ ଓଷା କଥ । ନୋହିଲେ ନେବ ଆରବାର ॥
ଏମନ୍ତେ ବେଳଙ୍କି ବୁଡ଼ିଲ । ଅନ୍ଧାର ଚୌଦିଗ ଘୋଟିଲ ॥
ରଜନୀ ଅର୍ଦ୍ଧ ଅନ୍ତୁ ହୋଇ । ଅନ୍ଧାରେ ପଥ ନ ଦିଶଇ ॥
ଖାରସେନକୁ ବଧ କରେ । ବାନ୍ଧିଚ ଚର୍ମ ଦଉଡ଼ିରେ ॥
ଏମନ୍ତେ ଘେନଣ ଅଇଲେ । ରାଜାର ସିଂହଦ୍ୱାରେ ହେଲେ ॥
ବାଣ୍ଡ ବାଟରେ ସେ ନ ଯାଇ । ବାଡ଼ିଆଡ଼କୁ ଗଲେ ନେଇ ॥
ଚର୍ମ ଦଉଡ଼ା ମୁକୁଳାଇ । ଖାରସେନକୁ ଏହା କହି ॥
ବୋଲିବୁ ଘରେ ଏହା ଯାଇ । ଯମରାଜା ଯେ ଥିଲେ ନେଇ ॥
ନ କଲ ଯତ୍ନ ତାଙ୍କ ବ୍ରତ । ତେଣୁ ସେ ହୋଇଲେ କୁପିତ ॥
ପାଠ ପଢ଼ଣ ଆସୁଥିଲି । ଧରି ନେଇଣ ଗଲେ ଚଳି ॥
ମାଆଙ୍କ ହେତୁରୁ ତାଙ୍କର । ପ୍ରାଣ ପାଇଲି ଏହି ଥର ॥
ଆରଥରକୁ ରକ୍ଷାନାହିଁ । ମୋତେ ଛଆଣିଛନ୍ତି କହି ॥
ଏ ଆଦ ସମସ୍ତ କହିବୁ । ମାତା ପିତାକୁ ବୁଝାଇବୁ ॥
ଯେମନ୍ତେ ମୋ ଓଷା କରିବେ । ନୋହିଲେ ଫଳ ସେ ଭୁଞ୍ଜିବ ॥
ଏମନ୍ତ ଯମଦେବ କହି । ଖାରସେନକୁ ସଙ୍ଗେ ନେଇ ॥
ବାଡ଼ି ଦୁଆରେ ଛାଡ଼ିଦେଲେ । ଖଣ୍ଡେ ଦୂରରେ ଲୁଚିହେଲେ ॥
ଭୟ ପାଇଣ ଖାରସେନ । ଉଚ୍ଚରେ କରିଲା ରୋଦନ ॥

ଆଲୁକେ ଡାକେ ମାଆ ମାଆ । ଅନାଇଥାନ୍ତି କନ୍ଦୁନାଦା ॥
ପୁର ମଧ୍ୟରେ ଲୀଳାବତୀ । ବସିଛନ୍ତି ହୋଇ ଦୁଃଖମତି ॥
ପୋଇଲ ବସିଛନ୍ତି ଯେତେ । ଜଣେ ଶୁଣିଲା ପାଟି ବାତ ॥
ବୋଲଇ ପୁଅର କାନ୍ଦଣା । ଶୁଭୁଛି କାହିଁ ଶୁଣ କନା ॥
କେ ବୋଲେ ଡନଦନ ହେଲା । ହଜିଛି ବୀରସେନ ବଳା ॥
କେହୁ ଖାଇଲା କି ମାଇଲା । କିଛି ତ ଜଣା ନ ପଡ଼ିଲା ॥
ସତେ ଦେଖିବୁ ଆଜ ପୁଅ । କମାଇ ତୁମେ ଏହା କହ ॥
ଏହି ରୂପରେ କୁହାକୁହି । ହେଉଅଛନ୍ତି ସର୍ବେ ରହି ॥
ଏମନ୍ତ ବେଳେ ବୀରସେନ । ଉଠେ ଡାକିଲା ଘନ ଘନ ॥
ପୁଅ ଡାକିବା ଶବ୍ଦ ପାଇ । ଅଇଲେ ଦାସୀମାନେ ଧାଇଁ ॥
ଯେବେ ଅଛନ୍ତି ଘାପାବଳୀ । ମାତା ସଙ୍ଗତେ ସର୍ବେ ମିଳି ॥
କବାଟ ପିଟାଇଣ ଦେଲେ । ପୁଅକୁ ଦେଖି କାଖ କଲେ ॥
ଯମ ଯେ ଗଲେ ନିଜ ବାସ । ପୁଅକୁ କରନ୍ତି ଆଶ୍ୱାସ ॥
ପୁଅକୁ ଲୀଳାବତୀ ଦେଖି । କାନ୍ଦ ଦଣ୍ଡରେ କହ ବସ୍ତି ॥
କାହିଁ ତୁ ଥିଲୁ ଏତେଦିନ । ଅନ୍ନନସ୍ନାନ ଦୁଃଖୀମନ ॥
ବାରତା ପାଇଣ ସକଳ । ରାଜା ମନ୍ଦିରେ ହେଲେ ମେଳ ॥
ସମସ୍ତେ ଦେଖି ହରଷିତ । ପୁଛନ୍ତି ବାବୁ କହ ସତ ॥
କମାଇଁ ଲୁଚିଗଲୁ କାହିଁ । କହ ଆମ୍ଭଙ୍କୁ ସବୁ ଫେଇ ॥
ବୋଲଇ ବୀରସେନ ଶୁଣି । ଲୁଚି ନଥିଲି ମୁଁ ଜନନୀ ॥
ନକଲ ତୁମ୍ଭେ ବାଟଓଷା । ହୋଇଲେ ଯମରାଜା ରୋଷା ॥
ମୋତେ ଯେବେଣ ଗଲେ ବାନ୍ଧି । ସକଳ କହେ କାନ୍ଦି କାନ୍ଦି ॥
ତାଙ୍କର ମାଆ ଦୟା କଲେ । ବଞ୍ଚିବା ଉପାୟ କହିଲେ ॥
ନ ମାର ତେଣୁ ସୂର୍ଯ୍ୟସୁତ । ଛାଡ଼ି ଦେଇଣ ଗଲେ ଏଥ ॥
କହି ସେ ଅଛନ୍ତି ତଥାର । ନ କଲେ ପୁଣି ନେବ ଧରି ॥
ଏମନ୍ତ ଶୁଣି ଲୀଳାବତୀ । ଚମକପଡ଼ି ଦୁଃଖମତି ॥

ମୁଁ ଚଣ୍ଡାଳୁଣୀ କଷ୍ଟ କଲି । ଯମଦେବଙ୍କ ଓଷା ଭୁଲି ॥
ସୁଅଲୁ ଦେଲ ଏତେ ଦୁଃଖ । ଅନେକ ହୋଇଲେ ବିମୁଖ ॥
ନବଟ ଦିନ ଓଷା ବିଧି । ଯୋଗେ ପଡ଼ିଛୁ ଆଉ କଲି ॥
ତାପୀଏ କଲେ ଓଷା ବିଧି । ଆଖୁ କଦଳୀ ଦ୍ରବ୍ୟ ଆଦି ॥
ଗନ୍ଧ ଚନ୍ଦନ ଫୁଲମାଳ । ଗୁଗୁଳ ସିନ୍ଦୁର କଜ୍ଜ୍ୱଳ ॥
ଯେତେକ ଲୋଡ଼ା ଦ୍ରବ୍ୟମାନ । କ୍ଷଣକେ ହେଲା ସମ୍ପାଦନ ॥
ବୃଙ୍ଗୁଡ଼ି ଆଦି ସଜକରି । ବାହାର ହେଲେ ସର୍ବନାରୀ ॥
ବନସ୍ତ ମଧ୍ୟରେ ମିଳିଲେ । ଆନନ୍ଦେ ହୁଳହୁଳି ଦେଲେ ॥
ଖନନ କରି ଗର୍ତ୍ତ ଦୁଇ । ଗନ୍ଧ ଚନ୍ଦନ ଛେରା ଦେଇ ॥
ବିଧି ବିଧାନ ସବୁ କଲେ । ବଜ୍ରମୂଳରେ ପହଁରିଲେ ॥
ଆନନ୍ଦେ ଦେଇ ହୁଳହୁଳି । ଯେ ଯା ମନ୍ଦିରେ ଗଲେ ଚଳି ॥
ଏତେ ମହିମା ଏ ଓଷାର । ଯେ କରେ ଶରଧା ମନର ॥
ଯେ କରେ ହୋଇ ନିଷ୍ଠାବ୍ରତ । ଅପୁତ୍ରୀ ହେଲେ ହୁଏ ପୁତ୍ର ॥
ନିର୍ଦ୍ଧନ ହୁଏ ଧନବାନ । ଜନ୍ମାନ୍ଧ ପାଇବ ନୟନ ।
ଏମନ୍ତ ଅଟେ ବାଟଓଷା । ଯେକରେ ପାଲଟେ ତା ଦଶା ॥
ଯମର ଜ୍ୱାଳା ନ ଲାଗଇ । ମହାସୁଖରେ ଦିନ ଯାଇ ॥
ସୁବର୍ଣ୍ଣବାଛି ଅମଳନ । ଉଦ୍ଧାରି ଥିବ ଦିନୁ ଦିନ ॥
କହିବା ଲୋକକୁ ଶୀତଳ । ସମସ୍ତ ଦେବ କରି ଠୁଳ ॥
ଓଷା ବଢ଼ାଇ ଗୃହେ ଯିବ । ଆନନ୍ଦେ ହୁଳହୁଳି ଦେବ ॥
ଘଇ ବନ୍ଧୁଙ୍କୁ ବାଣ୍ଟି ଦେବ । ଆପଣେ ସନ୍ତୋଷେ ଭୁଞ୍ଜିବ ।
ଯେ ଏହା କରେ ଉପହାସ । ତାହାର ବଂଶ ହୁଏ ନାଶ ॥
କୃଷ୍ଣ ଚରଣେ ମୋର ଆଶ । କହଇ ଗୋପୀନାଥ ଦାସ ॥

ସମାପ୍ତ

* *** *

# ବାରମାସ ଗୀତ

[ ରାଗ—ଗଡ଼ମାଳିଆ ]

ଆଦ୍ୟ ମାର୍ଗଶିର ମାସେ ବସି ବିରହିଣୀ । କାନ୍ତ ଗୁଣ ଗୁଣି ଦୁଃଖ କଟାଇ ରଜନୀ ଯେ । ଆହା କାନ୍ତ । ଅନାଥୀକୁ କଲେତ ଅନାଥ ଯେ । ୧ ।

ପୁଷମାସ ଘନଶୀତେ ଥିଲେ ମୋର ପ୍ରାଣ । କୋଳରେ ଆଲିଙ୍ଗି ତାଙ୍କୁ ହରନ୍ତି ମାନସ ଯେ । ଛାଡ଼ି ସ୍ୱାମି । ସ୍ୱାଙ୍ଗ ହୋଇଲି ଅଙ୍ଗିରଙ୍ଗୀ ଯେ । ୨ ।

ମାଘମାସେ ଆସିବାକୁ କଣ୍ଠ କରିଥିଲେ । ଏତେଦିନ ହେଲା କାନ୍ତ ଫେରି ନ ଆଇଲେ ଯେ । ମଲ୍ଲୀଫୁଲ । ଶଯ୍ୟାରେ ସାଜିବା ମୋ ବିଫଳ ଯେ ।୩।

ଫାଲଗୁନ ମାସେ ହରି ଦୋଳଯାତ୍ରା ଦିନ । କାନ୍ତଥିଲେ ଫିଙ୍ଗିଥାନ୍ତି ନାନାବର୍ଣ୍ଣ ବନ ଯେ । ପିଚକାରି । ଅଧରେ ଦଅନ୍ତି ଅଙ୍ଗଭରି ଯେ ।

ଚଇତ୍ର ମାସରେ କଅଁଳ ଫୁଟଇ ମଧୁର । କାନ୍ତ ଥିଲେ ଖାଇଥାନ୍ତେ କଅଁଳ ଖଇର ଯେ । ମୁଖବାସ । ପ୍ରକାଶନ୍ତେ ହରଷ ମାନସ ଯେ ।୪।

ବୈଶାଖ ମାସେ ଚନ୍ଦନ ଯାତ୍ରା ଯେ ହୁଅଇ । ଚନ୍ଦନ କର୍ପୂର ଗୋଳି ପତି ଅଙ୍ଗେ ଦେଇ ଯେ । ଭ୍ରମୁଥାନ୍ତି । ଯାତ୍ରା ଦେଖିବାକୁ ସବ ରାଜି ଯେ ।୬।

ଜ୍ୟେଷ୍ଠମାସେ ଜଗନ୍ନାଥ ଦେବଙ୍କର ସ୍ନାନ୍ । ପଞ୍ଚ ସଖ ଦେବତାଙ୍କୁ କରନ୍ତି ଦର୍ଶନ ଯେ । ସଞ୍ଜୁ ଫୁଲ । ସ୍ୱାମି ଛାଡ଼ି କଲେକ ନଷ୍ଟଳ ଯେ ।୭।

ଆଷାଢ଼ମାସେ ପ୍ରଭୁଙ୍କ ଶ୍ରୀଗୁଣ୍ଡିଚ୍ଚ ଯାତ । କେତେ ଦୁଃଖ ଘଟେ ଖର୍ଙ୍କି ମନ ପୁଲକତ ଯେ କର୍ମହୀନ । କନ୍ଦ୍ୱାଲ ମେଣ୍ଢାଇବ କେ ଜନ ଯେ ।୮।

ଶ୍ରାବଣମାସେ ବରଷଇ ମୁଷଳର ଧାର । ବିଦ୍ୟୁତ ଚମକ ଦେଖି ଥରଇ ଅନ୍ତର ଯେ । କେଉଁପରି । ଜାଣୁଥିବେ ପର ବିଶ୍ୱବସି ଯେ । ୯ ।

ଭାଦ୍ରବ ମାସରେ ପଡ଼େ ହରିଙ୍କ ଜନମ । ନନ୍ଦଘରେ ଯେସନ କହିଲେ ନରୋତ୍ତମ ଯେ । ଉପବାସ । କାନ୍ତା କରିଥାନ୍ତି ଏ ଦିବସ ଯେ । ୧୦ ॥

ଆଶ୍ୱିନ ମାସରେ ମହାମାୟୀ ଜନ୍ମ ପୂଜା । ଲକ୍ଷ ଲକ୍ଷ ବଳି ଆଣି ଯୋଗାବନ୍ତି ରଜା ଯେ । ପତିଥିଲେ । ସଉଭାଗ୍ୟ ମଣିଥାନ୍ତି ଭଲେ ଯେ । ୧୧ ।

କାର୍ତ୍ତିକ ମାସରେ ପଡ଼େ କୁମାର ପୂର୍ଣ୍ଣିମା । ଚନ୍ଦ୍ର କିରଣରେ ବସି ପାଶେ ମୋର ସ୍ୱାମୀ ଯେ । ଯୁଆଖେଳ । ଖେଳିଥାନ୍ତେ କାନ୍ତ ହୋଇ ଭୋଳ ଯେ । ୧୨ ।

ବାରମାସେ ବାରଚିନ୍ତା ଖଞ୍ଜିଲି ଦଇବ । କି ବୁଦ୍ଧି କରିବି କିଛି ନ ଲଗେ ସମ୍ଭବ ଯେ । ବୁଦ୍ଧିହୀନ । କହେ ଦାସ ଲକ୍ଷ୍ମୀ ନାରାୟଣ ଯେ । ୧୩ ।

—*—

## ସମାପ୍ତ

ମୁଦ୍ରଣ-ରତ୍ନକାନ୍ତ ପ୍ରିଣ୍ଟର୍ସ, କାଫଲା ବଜାର, କଟକ-୨

# ବିଜ୍ଞାପନ

ଶ୍ରୀମଦ୍ ଭାଗବତ ସ୍ୱୟଂ କୃଷ୍ଣଙ୍କ ମୁଖ ନିଃସୃତ ବାଣୀ ହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥ ରୂପେ ପରିଗଣିତ । ଏଣୁ ଏହିଗ୍ରନ୍ଥ ଘରେ, ଘରେ ଏବଂ ଦେବାଦେବୀ ମନ୍ଦିର ମାନଙ୍କରେ ପୂଜା ହେଉଛି ତଥା ପାଠ ମଧ୍ୟ ହେଉଛି । କିନ୍ତୁ ଏହି ଭାଗବତ ୧୩ ଖଣ୍ଡବହି ହେତୁ ତହିଁରୁ ସାର ବା ତା'ର ମାହାତ୍ମ୍ୟ ସଂଗ୍ରହ କରିବା ବହୁ କଷ୍ଟ ସାଧ୍ୟ । ଏଣୁ ଲୋକଲୋଚନକୁ ଆଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡ ପାଠକଲେ ଉକ୍ତ ତେରଖଣ୍ଡ ଭାଗବତ ବହିର ମାହାତ୍ମ୍ୟ ଅଚିରେ ଲାଭ କରିପାରିବେ । ଏହା ବ୍ୟତୀତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ପାଇବେ ଚତୁଃଶ୍ଳୋକୀ ଭାଗବତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତିସହ ଭେଟ, ଭକ୍ତର କଷ୍ଟ ନିବୃତ୍ତିପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ସହିତ ପ୍ରେତ ପ୍ରାପ୍ତ ଓ ତହିଁରୁ ଉଦ୍ଧାର ତଥା ଶ୍ରୀମଦ୍ ଭାଗବତ ସପ୍ତାହ ଯଜ୍ଞର ବିଧି ।

ଏତଦ୍ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଓଷା, ବାର, ବ୍ରତ, ସମସ୍ତ ପ୍ରକାର ପୁରାଣ, ଗପ, ନାଟକ, ପଞ୍ଜିକା, କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ବିଦ୍ୟାରମ୍ଭ ପାଇଁ ବିଭିନ୍ନ ପ୍ରକାରର ଅକ୍ଷର ଶିକ୍ଷାବହି ନିମ୍ନ ଠିକଣାରେ ପତ୍ରାଳାପ କଲେ ସୁବିଧା ଦରରେ ପାଇପାରିବେ । ପ୍ରକାଶ ପାଇଲା ବୃହତ ଜ୍ୟୋତିଷ ସାର ପାରାଶର, ହୋରା ମୂଲ୍ୟ-୧୫୦ ଟଙ୍କା

ଠିକଣା

ମେସର୍ସ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ - ୨

ଫୋନ୍ ନଂ ୬୦୩୨୯୬

ଡି.ଟି.ପି- ମାନସ ଡି.ଟି.ପି ସେଣ୍ଟର, ଚାନ୍ଦିନୀଚୌକ, କଟକ-୧